


# ଜଙ୍ଗଲର ବଡ ବୁଦ୍ଧିଆ

(ପାଚ୍ୟ ଭୂଖଣ୍ଡର ପଶୁରାଇଜର କାହାଣୀ)

କଲା ଥଇରାନି

ପୁଲକ ବିଶ୍ୱାସ

ISBN 81-237-2370-9

ପ୍ରଥମ ପ୍ରକାଶ 1984 (ଶକାବ୍ଦ 1906)
ପଞ୍ଚମ ମୁଦ୍ରଣ 1998 (ଶକାବ୍ଦ 1920)

The Wise and the Wily *(Oriya)*
ଟ. 9.50
ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ,
ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।



ନେହେରୁ ବାଳ ପୁସ୍ତକାଳୟ

# ଜଙ୍ଗଲର ବଡ ବୁଦ୍ଧିଆ

(ପ୍ରାଚ୍ୟ ଭୂଖଣ୍ଡର ପଶୁରାଇଜର କାହାଣୀ)

କଲା ଥଇରାନି

ଓଡ଼ିଆ ଅନୁବାଦ

ପ୍ରସନ୍ନ କୁମାର ମିଶ୍ର

ଚିତ୍ର

ପୁଲକ ବିଶ୍ୱାସ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



# ଠେକୁଆକୁ କାହିଁକି ବିଜ୍ଞ କୁହାଯାଏ

ମଧ୍ୟାହ୍ନ ସମୟ । ଚାରିଆଡେ ଉଜ୍ଜ୍ୱଳ ସୂର୍ଯ୍ୟ-କିରଣ । ତାତି ବି ଲାଗୁଥାଏ । ଗଛର ଛାଇରେ ବିଶ୍ରାମ ନେଉଥା'ନ୍ତି ବଣ ମୁଲକର ରଜା, ସିଂହ । ଖାଦ୍ୟ ପାଇଁ ପ୍ରତିଦିନ ଦୌଡାଦୌଡି କରି ଶିକାର କରିବା ଏଣିକି ତାଙ୍କୁ ବାଧିଲାଣି ।

ସେ ମନକୁମନ କହି ହେଲେ, "ମୁଁ ତ ପଶୁ ରାଇଜର ରଜା । ଖାଦ୍ୟ ପାଇଁ ମୁଁ କାହିଁକି ଏତେ କଷ୍ଟ କରିବି ଯେ ।"

ତେଣୁ ତାଙ୍କ ଗୁମ୍ଫା ଆଗରେ ସବୁ ପଶୁମାନେ ସଞ୍ଜ ପୂର୍ବରୁ ସମବେତ ହେବାକୁ ସେ ଆଦେଶ ଦେଲେ । ତଦନୁସାରେ ପଶୁମାନେ ଉପସ୍ଥିତ ହେବାରୁ ସେ କହିଲେ—"ପ୍ରତିଦିନ ମୁଁ ଆହାର ପାଇଁ ଶିକାରକୁ ବାହାରୁଛି, ଫଳରେ ତୁମେ ସବୁ ଜଙ୍ଗଲରେ ବୁଲାବୁଲି କରିବାକୁ ଡରୁଚ । ଯଦି ତୁମ ଭିତରୁ ଜଣେ କେହି ପ୍ରତିଦିନ ସକାଳେ ମୋର ଆହାର ରୂପେ ମୋ ନିକଟକୁ ଆସିବା ସ୍ଥିର ହୁଅନ୍ତା, ତେବେ ମୋର ଶିକାରକୁ ବାହାରିବା ଆବଶ୍ୟକ ପଡନ୍ତା ନାହିଁ । ତୁମେମାନେ ମଧ୍ୟ ନିର୍ଭୟରେ ଚଲାବୁଲା କରି ପାରନ୍ତ । କ'ଣ କହୁଚ ? ସଭିଏଁ ବିଚାର କରି ଆଜି ମୋତେ ଜଣାଅ ।"

ପ୍ରସ୍ତାବଟି ପଶୁମାନଙ୍କ ମନକୁ ପାଇଲା । କିନ୍ତୁ କେଉଁ ଜଣକ ଆହାର ହୋଇ ଯିବ ତା' ସ୍ଥିର ହେବ କେମିତି ?

ଅନେକ ବିଚାର ଆଲୋଚନା ପରେ ସେମାନେ ପ୍ରତି ପକ୍ଷରେ ଏକାଠି ହେବାକୁ ସ୍ଥିର କଲେ । ସେତିକିବେଳେ ଗୁଳା ପକାଇ କେଉଁ ଜଣକ ପରଦିନ ପ୍ରଭାତରେ ରଜାଙ୍କ ନିକଟକୁ ଖାଦ୍ୟ ହୋଇ ଯିବ ତା' ଠିକ୍ କରାଯିବ ।

ଯୋଜନାଟି ଭଲ ଭାବେ କାର୍ଯ୍ୟକାରୀ ହେଲା । ସିଂହ ପ୍ରତିଦିନ ତାଙ୍କ ଆହାର ପାଇଲେ । ପଶୁମାନେ ନିର୍ଭୟରେ ବୁଲାବୁଲି କଲେ, ସେମାନଙ୍କୁ ଯେଉଁ ସୁଖ ଶାନ୍ତି ମିଳିଲା ତା' ସେମାନେ ପୂର୍ବରୁ କେବେ ହେଲେ ପାଇ ନ ଥିଲେ ।

ଦିନେ ପାଳି ପଡ଼ିଲା ଠେକୁଆର । ଠେକୁଆ ପ୍ରତିବାଦ କରି କହିଲା, "ମୋ ଭଳି କ୍ଷୁଦ୍ର ଆହାର ପାଇ ସିଂହଙ୍କ ପେଟ ପୂରିବ ନାହିଁ ।"

ହରିଣଟିଏ ଉତ୍ତର ଦେଇ କହିଲା, "ସେମିତି କହନା, ମଝିରେ ମଝିରେ ଲଘୁ ଆହାର ପେଟ ପାଇଁ ଭଲ ।"

ଅନ୍ୟ ପଶୁମାନେ ମଧ୍ୟ ପାଟି କରି କହିଲେ, "ସମସ୍ତଙ୍କର ନିଷ୍ପତ୍ତି ଠେକୁଆ ମାନିନେବା ଉଚିତ ।"

ଅଗତ୍ୟା ଠେକୁଆ କହିଲା, "ହଉ, ମୁଁ ଯିବି, କିନ୍ତୁ ତୁମେ ଦେଖିବ, ଆସନ୍ତାକାଲି ହିଁ ମୁଁ ଫେରି ଆସିବି ।"

ଠେକୁଆର କଥା ଶୁଣି ସମସ୍ତେ ଠୋ ଠୋ ହୋଇ ହସିଲେ ।

ସେଦିନ ରାତି ସାରା ଠେକୁଆ ଖାଲି ଏପଟ ସେପଟ ହେଲା । ମୁଣ୍ଡରେ ଗଭୀର ଚିନ୍ତା । ମରିବାକୁ ତା'ର ଆଦୌ ଇଚ୍ଛା ନ ଥାଏ । ସେ ମନକୁ ମନ କହିହେଲା, "ଏଇ ଅତ୍ୟାଚାରୀ ସିଂହର କବଳରୁ ରକ୍ଷା ପାଇବା ପାଇଁ କିଛି ନା କିଛି ଗୋଟାଏ ଉପାୟ ବାହାର କରିବାକୁ ପଡ଼ିବ ।"

ରାତି ପାହିଲା ପୂର୍ବରୁ ସେ ମନେ ମନେ ଏକ ଉପାୟ ସ୍ଥିର କରି ସାରିଥିଲା । ତା'ପରେ ସେ ଗଲା ଶୋଇବାକୁ ।



ତା' ନିଦ ଭାଙ୍ଗିଲା ବେଳକୁ ସୂର୍ଯ୍ୟ ବହୁତ ଉପରକୁ ଉଠି-ଗଲେଣି । ଧୀରେ ସୁସ୍ଥେ ଠେକୁଆ ବାହାରିଲା । କିଛି ତରତର ହେବାର ନାହିଁ । ଗୁମ୍ଫା ନିକଟ ହେଲା କ୍ଷଣି ସେ ବଡ ପାଟିରେ କହିଲା, "ଯାହେଉ, ଶେଷରେ ମୁଁ ଏଠି ଆସି ପହଞ୍ଚି ପାରିଚି ମହାରାଜ ।"

ସିଂହ ବିଶ୍ରାମ କକ୍ଷରୁ ପଦାକୁ ଆସିଲେ । ରାଗରେ ତାଙ୍କ ମୁହଁ ଭୟଙ୍କର ଦିଶୁଥାଏ । ସକାଳ ପହରୁ ସେ ଆହାରକୁ ଅପେକ୍ଷା କରି ବସିଛନ୍ତି, ଅଥଚ ସଞ୍ଜ ବେଳକୁ ଆସୁଚି ଏତେ ବକଟେ ଠେକୁଆ । ଏ୍ୱା' ପରି ବାରଟା ତ ସେ ଗିଳି ଦେଇ ପାରିବେ ।

ପାଦର ପଞ୍ଝାରେ ଠେକୁଆକୁ ଚେକି ଧରି ସିଂହ ଗର୍ଜନ କରି କହିଲେ, "ରେ ମୂର୍ଖ । ଏତେ ବିଳମ୍ବ କରିବାକୁ ତୁ କେମିତି ସାହସ କଲୁ ? ମୁଁ ତୋତେ ଅପେକ୍ଷା କରିଛି ବୋଲି ତୁ କ'ଣ ଜାଣିନୁ ?"

ସେତେବେଳକୁ ଠେକୁଆ ଭୟରେ କଳା-କାଠ ପଡିଗଲାଣି । ତଥାପି ଦମ୍ଭ ଧରି ସେ କହିଲା—"ଶୁଣନ୍ତୁ ଛାମୁ । ଟିକେ ମୋ କଥା ଶୁଣନ୍ତୁ । ସକାଳୁ ବାହାରିଲିଣି । ହେଲେ ମୁଁ କ'ଣ କରିବି, ବାଟରେ ଆପଣଙ୍କଠାରୁ ବଡ ଓ ଅଧିକ ବଳବାନ୍ ଅନ୍ୟ ଏକ ସିଂହ ହାବୁଡରେ ପଡିଗଲି । ସେ ମୋତେ ଧରି ପକାଇ କହିଲା,"ଯେ ସିଏ ହେଉଛି ବଣର ରଜା, ସମସ୍ତେ ତା'ର ଆଦେଶ ପାଳନ କରିବା ଉଚିତ ।"



କଥା ଶୁଣି ସିଂହ ଠେକୁଆକୁ ତଳେ ପକାଇ ଦେଲେ । ଭୁଲିଗଲେ ଖେଳ । କହିଲେ, "ମୁଁ ଏଇ ମୁଲକର ରଜା । ମୋଠାରୁ ପୁଣି ବଳୁଆ କିଏ ?"

ସିଂହ ଗର୍ଜନ କରି କହିଲେ, "ଚାଲ୍ ମୋତେ ଦେଖାଇ ଦେ ।"

ଠେକୁଆ ମୁଣ୍ଡ ହଲାଇ କହିଲା, "ନା ମହାରଜ । ନା, ମୋତେ ଭାରି ଡର, ମୁଁ ତା' ନିକଟକୁ ଯିବି ନି । ଆପଣ ମଧ୍ୟ ତା' ଆଗକୁ ଯାଆନ୍ତୁ ନାହିଁ । ଆପଣ ତାକୁ ବଳରେ ପାରିବେ ନାହିଁ ।"

"ଆରେ ଚାଲ୍ ନା ତା' ପାଖକୁ । ତାକୁ ଶେଷ ନ କଲା ଯାଏଁ ମୁଁ ବିଶ୍ରାମ ନେବି ନାହିଁ ।"

"ସେ ବହୁତ ବହୁତ ଶକ୍ତିଶାଳୀ ମହାରାଜ ।"

"ତର୍କ କରନା, ବାଟ ବତା । ନ ହେଲେ ତୋତେ ମାରିଦେବି ।"

ସିଂହ ଓ ଠେକୁଆ ସାଙ୍ଗ ହୋଇ ଚାଲିଲେ । ଯାଇ ପହଞ୍ଚିଲେ ଏକ ଗଭୀର କୂଅ ନିକଟରେ । କୂଅ ପାଖକୁ ଦୌଡ଼ି ଯାଇ ଠେକୁଆ କହିଲା—"ମହାରାଜ । ସେ ଏହା ଭିତରେ ଅଛି । ମୁଁ ପୁଣି ଥରେ ଆପଣଙ୍କୁ ନିବେଦନ କରୁଛି, ଆପଣ ତା' ସାଙ୍ଗରେ ଲାଗନ୍ତୁ ନାହିଁ, ଯୁଦ୍ଧ ପାଇଁ ଡାକନ୍ତୁ ନାହିଁ ।"

ସିଂହ କୂଅ ପାଖକୁ ଗଲେ, ଚାହିଁଲେ ଭିତରକୁ । ତାଙ୍କ ଛାଇ ତାଙ୍କୁ ଚାହିଁଲା ଭଳି ଦିଶିଲା । ସିଂହ ଭାବିଲେ, "ସେ ମୋତେ କେମିତି ଚାହିଁଚି ଦେଖ ।" ସେ ସମସ୍ତ ଶକ୍ତି ଖଟାଇ ଗର୍ଜନ କଲେ ଓ ପ୍ରତିଧ୍ୱନୀକୁ ଭାବିଲେ ଶତ୍ରୁର ପ୍ରତ୍ୟୁତ୍ତର । ଏଣୁ ସେ ଦେଲେ ଆକ୍ରମଣର ଧମକ, ଛାଇ ମଧ୍ୟ ତାଙ୍କୁ ସେଇଭଳି ଧମକ ଦେଲା ।

ସେ ସିଂହ ଧମକରେ କ'ଣ ଡରିବା ଜନ୍ତୁ । କ୍ରୋଧରେ ଅପମାନ ହୋଇ ସେ ଡେଇଁ ପଡ଼ିଲେ କୂଅ ଭିତରକୁ ।

"ଓଃ---ଓଃ" କୂଅ ଭିତରୁ ଶୁଣାଗଲା ସିଂହଙ୍କର କ୍ଷୀଣ ସ୍ୱର । ପାଣିରେ କିଛି ସମୟ ବୁଡ୍-ଉଠ୍ ହେବା ପରେ ଶେଷରେ ବୁଡ଼ିଗଲେ ।

ତା' ପରେ ଠେକୁଆ ଚାହିଁଲା କୂଅକୁ । ଦୀର୍ଘଶ୍ୱାସ ମାରି କହିଲା, "ଏଥର୍ ଯାଇଚି, ଆଉ ଆମକୁ ହଇରାଣ କରିବ ନାହିଁ ।" ଆନନ୍ଦରେ ସେ ଦୌଡ଼ିଯାଇ ଅନ୍ୟ ପଶୁମାନଙ୍କୁ ଖବର ଦେଲା । ସେଦିନ ପଶୁମାନଙ୍କର କି ଖୁସି । ସମସ୍ତେ ଠେକୁଆକୁ ଘେରି ବେଦମ୍ ନାଚିଲେ । ତା'ପରେ ତାକୁ କାନ୍ଧରେ ବସାଇ କହିଲେ, "ତୁ ଆମର ସର୍ଦ୍ଦାର ।" ସେଇଦିନରୁ ଠେକୁଆକୁ କୁହାଯାଉଚି ବିଜ୍ଞ । ସମସ୍ୟା ପଡ଼ିଲେ ସେଇଦିନରୁ ପଶୁମାନେ ସାହାଯ୍ୟ ଓ ପରାମର୍ଶ ପାଇଁ ତା' ନିକଟକୁ ଆସନ୍ତି ।

(ବ୍ରହ୍ମ ଦେଶର ଗଳ୍ପରେ ଠେକୁଆ ପରମ ବିଜ୍ଞ ରୂପେ ବର୍ଣ୍ଣିତ )

# ଶିବାଲୁ ଓ ହାତୀ

ଶିବାଲୁ ଗୋଟିଏ ଶିଆଳର ନାମ । ଦିନକର କଥା । ଅପରାହ୍ନ । ସୂର୍ଯ୍ୟ ଅସ୍ତ ହୋଇ ନ ଥାନ୍ତି । ଶିବାଲୁ ବୁଲୁଥାଏ ବଣରେ । ତା' ନଜରରେ ପଡ଼ିଲା ଗୋଟିଏ ହାତୀ । ହାତୀଟି ଅଳ୍ପସମୟ ଆଗରୁ ମରିଯାଇଥାଏ । ପ୍ରଥମେ ଶିବାଲୁ ମଲା ହାତୀର ଚାରିପାଖରେ ଘେରାଏ ବୁଲି ମୃତ୍ୟୁର କାରଣ ଖୋଜିଲା । ସେ ଅନୁମାନ କରିନେଲା ଯେ ମୃତ୍ୟୁ ସ୍ୱାଭାବିକ ଭାବରେ ଘଟିଛି । ତା'ପରେ ସେ ହାତୀକୁ ଖାଇବ ବୋଲି ସ୍ଥିର କଲା । କିନ୍ତୁ ଯେତେ ଚେଷ୍ଟା କଲେ ବି ହାତୀର ଟାଣ ଚମଡ଼ାକୁ କାଟି ପାରିଲା ନାହିଁ ।

ଏତିକିବେଳେ ସେ ଏକ ସିଂହର ପାଦଶବ୍ଦ ଶୁଣି ପାରିଲା । ମନକୁମନ କହିଲା, "ହାୟ, ଏଥର ସରିଲା ମୋ ଖାଇବା ।" କିନ୍ତୁ ବିନା ଚେଷ୍ଟାରେ କୌଣସି କାର୍ଯ୍ୟ ପରିତ୍ୟାଗ କରିବା ଶିବାଲୁର ଚରିତ୍ର ନୁହେଁ ।

ସିଂହ ସେଠାରେ ପହଞ୍ଚିବା କ୍ଷଣି ଶିବାଲୁ ମାଟି ଛୁଇଁ ପ୍ରଣାମ କରି କହିଲା, "ମହାରାଜ ! ଦୟାପୂର୍ବକ ମୋର ବିନମ୍ର ନିବେଦନ ଗ୍ରହଣ କରନ୍ତୁ । ଆପଣଙ୍କ ଲାଗି ମୁଁ ହାତୀଟିକୁ ଜଗି ବସିଛି । ଦୟାକରି ଭୋଜନ କରନ୍ତୁ ।"



ଶିଆଳର କଥାରେ ସିଂହ ଉତ୍‌ଫୁଲ୍ଲ ହୋଇଗଲା । ଅନ୍ୟର ଖାଦ୍ୟ ଖାଇଲେ ସମ୍ମାନ ଊଣା ହେବ ଭାବି ଆତ୍ମ-ଗର୍ବୀ ସିଂହ କହିଲା, "ଆରେ ବାବୁ । ଏ ହାତୀ ତୋର । ଅନ୍ୟ କାହାର ଶିକାର ମୁଁ ଭୋଜନ କରେ ନାହିଁ ।" ଏତିକି କହି ସିଂହ ଚାଲିଗଲା ବାଟେ ବାଟେ ।

ବିପଦ ଘୁଞ୍ଚିଯିବାରୁ ଶିଆଳ ଦୀର୍ଘଶ୍ୱାସ ତ୍ୟାଗ କଲା । ଚେଷ୍ଟା କଲା ଖାଇବାକୁ । କିନ୍ତୁ ସେତିକିବେଳେ ପହଞ୍ଚିଗଲା ଗୋଟିଏ ବାଘ ।

"ବିପଦ ଏକୁଟିଆ ଆସେନା"—ଶିଆଳ ମନେ ମନେ ଭାବିଲା, "ଏଇଟାକୁ ପୁଣି କିପରି ବିଦା କରିବି ? ତୋଷାମୋଦ ସିଂହ କ୍ଷେତ୍ରରେ ସିନା କାମ ଦେଖାଇଛି କିନ୍ତୁ ବାଘ ପାଇଁ ଅନ୍ୟ ଉପାୟ କରିବାକୁ ପଡ଼ିବ । ହଠାତ୍ ବିଜୁଳିର ଝଲକ ପରି ତା' ମୁଣ୍ଡକୁ ଗୋଟାଏ ବୁଦ୍ଧି ଜୁଟିଗଲା ।

ସେ ବାଘ ନିକଟକୁ ଦୌଡ଼ି ଗଲା । ସତେ ଯେମିତି ମନରେ ଅନେକ ଡର, ସେଇପରି ଟିକିଏ ଏଣିକି ଟିକିଏ ତେଣିକି ଚାହିଁ କହିଲା, "ମାମୁଁ । ତୁମେ ଅତି ଅସମୟରେ ପହଞ୍ଚି ଯାଇଛ । ଏଇ ମାତ୍ର ସିଂହ ହାତୀକୁ ମାରି ମୋତେ ଫେରିବା ଯାଏଁ ଜଗାଇ ଦେଇ ଯାଇଛି । ବିଶେଷ କରି ବାଘମାନଙ୍କ ଉପରେ ତାର ଭାରି ରାଗ । ସେ କହି ଯାଇଛି ଯଦି କୌଣସି ବାଘ ଆସେ ତାକୁ ସାଙ୍ଗେ ସାଙ୍ଗେ ଖବର ଦେବାକୁ ।





"ଆମର ଅପରାଧ ?" ବାଘ ଚିନ୍ତିତ ହୋଇ ପଚାରିଲା ।

"ମୋର ଯାହା ମନେ ହୁଏ ଥରେ କେବେ ସେ ହାତୀଟିଏ ଶିକାର କରି ପକାଇ ଯାଇଥିଲା । ପରେ ପରେ ବାଘଟିଏ ଆସି ହାତୀକୁ ଭୋଜନ କରିଥିଲା । ସେଇ ଦିନରୁ ସବୁ ବାଘଙ୍କୁ ମାରିବ ବୋଲି ସିଂହ ଶପଥ ନେଇଛି ।"

ବାଘ ଡରିଗଲା । ପଚାରିଲା, "ବନ୍ଧୁ । ଦୟା କରି କୁହତ ସିଂହ କେଉଁ ଦିଗକୁ ଯାଇଛି, ତା'ହେଲେ ମୁଁ ବିପରୀତ ଦିଗକୁ ପଳାଇଯିବି ।"

ଶିଆଳ ପାଦ ଟେକି ସଙ୍କେତ ଦେଲା । ନିମିଷକରେ ବାଘଟା ପଳାଇଗଲା ।

ବାଘ ଯାଇଚି କି ନାହିଁ ସେଠି ଆସି ପହଞ୍ଚିଗଲା ଚିତାବାଘ । ତାକୁ ଦେଖି ଶିଆଳ ମନେ ମନେ ଭାବିଲା, "ଭଲ ହେଲା, ଚିତାର ଦାନ୍ତ ବେଶ୍ ଟାଣ ଓ ଧାରୁଆ । ତା'ରି ଯୋଗେ ମୁଁ ପ୍ରଥମେ ହାତୀର ମୋଟା ଚମଡ଼ାକୁ କଟାଇ ଦେବି । ତା'ପରେ ତାକୁ ବିଦା କରିବି ।"

ନବାଗତ ଚିତାକୁ ସ୍ୱାଗତ କରି ଶିଆଳ କହିଲା, "ତୁମକୁ ଦେଖି ମୁଁ ବହୁତ ବହୁତ ଖୁସି । ଏହାଠାରୁ ଅଧିକ ଭଲ ସମୟରେ ତୁମେ ଆସି ପାରି ନ ଥାନ୍ତ । ଦେଖ, ସିଂହ ଶିକାର କରିଥିବା ହାତୀଟି ଏଇଠି ପଡ଼ି ରହିଚି । ମୋତେ ଜଗିବାକୁ କହି ସିଂହ ଯାଇଚି । ସେ ଫେରି ଆସିବା ପୂର୍ବରୁ ତୁମେ ମନଭରି ଖାଇନିଅ ।"



''ନା-ନା''—ଚିତା ଡରି ଯାଇ କହିଲା, ''ଯଦି ସିଂହ ଜାଣିବ ମୁଁ ତା'ର ଆହାରକୁ ସ୍ପର୍ଶ କରିଛି ତେବେ ମୋତେ ମାରି ଧୁନ୍‌ଧୁଣା କରିଦେବ ।''

''ଆରେ, ଏତେ ଡରୁଚୁ କାହିଁକି ?'' ଶିଆଳ କହିଲା, ''ମୁଁ କ'ଣ ତୋ' ବନ୍ଧୁ ନୁହେଁ ? ମୁଁ ସିଂହକୁ ଲକ୍ଷ୍ୟ ରଖିଚି, ତୁ ଖାଇ ନେ । ତା' ପାଦ ଶବ୍ଦ ଶୁଣିବା ମାତ୍ରେ ମୁଁ ତୋତେ ସତର୍କ କରିଦେବି ।''

ଏଥର ଚିତା ନିଶ୍ଚିନ୍ତ ହେଲା । ତା'ର ଧାରୁଆ ଦାନ୍ତରେ ହାତୀର ଚମଡାକୁ ଅକେ୍‌ଶରେ କାଟି ଦେଲା । କିନ୍ତୁ ଚମଡା କଟିଯିବା ମାତ୍ରେ ଶିଆଳ ହୁ-କେ-ହୋ କରି କହିଲା, ''ହାଁ-ହାଁ-ଜଲଦି ସିଂହ ଆସୁଚି ।''

କୁଆଡକୁ ନ ଚାହିଁ ଚିତା ଏକମୁହାଁ ତୀର ବେଗରେ ପଳାଇ-ଗଲା ଓ ଅଦୃଶ୍ୟ ହୋଇଗଲା ପଲକ ଭିତରେ ।

ସେତେବେଳକୁ ସଞ୍ଜ ହୋଇ ଆସିଲାଣି । ଗୋଟିଏ ଧୂସର ପର୍ଦ୍ଦା ଭଳି ବନ ଭୂମି ଉପରେ ବିଛେଇ ହୋଇଗଲାଣି ସଂଧ୍ୟା-ରାଗ । ଅତି ସନ୍ତୋଷର ସହିତ ଶିବାଲୁ ଚାରିଆଡକୁ ଚାହିଁଲା । ଚାରି ଦିଗ ଶାନ୍ତ, ନୀରବ ଓ ପ୍ରାଣୀ-ବିହୀନ । ସେ ଖୁସିମନରେ ହାତୀର ମଲା ଦେହ ନିକଟରେ ପେଟପୁର ମନ ଭରି ଭୋଜନ କରିବାକୁ ବସିପଡିଲା ।

(ଭାରତୀୟ ଅରଣ୍ୟବାସୀ ଶିଆଳ ତା'ର ବିଚକ୍ଷଣତା ପାଇଁ ବିଖ୍ୟାତ)



# ମହାରାଜାଙ୍କ ସେବାରେ

କୌଣସି ଏକ ପାହାଡର ଗୁମ୍ଫାରେ ବୁଢା ସିଂହଟିଏ ରହୁଥିଲା । ଦୌଡାଦୌଡି କରି ଶିକାର କରିବାକୁ ସେ ଥିଲା ଅକ୍ଷମ । ଏଣୁ ଯାହା ସହଜରେ ମିଳୁଥିଲା ତାହା ଖାଇ ସେ ଚଳିଯାଉଥିଲା ।

ଗ୍ରୀଷ୍ମ କାଳ । ଦିନେ ସେ ଚିନ୍ତିତ ମନରେ ଗୁମ୍ଫା ବାହାରେ ବସିଥିବା ବେଳେ ଦେଖା କରିବାକୁ ଆସିଲା ଗୋଟିଏ ଶିଆଳ ।

ମୁଣ୍ଡ ନୁଆଁଇ ଶିଆଳ କହିଲା, "ପ୍ରଣାମ ମହାରାଜ । ଆପଣ ଏପରି ବିଷର୍ଣ୍ଣ ଦିଶୁଛନ୍ତି କାହିଁକି ?"

"ସବୁଦିନେ ଏକା ପ୍ରକାରର ଖାଦ୍ୟ ଖାଇ ଖାଇ ବିରକ୍ତ ଲାଗିଲାଣି ।" ଗୋଟିଏ ଲମ୍ବା ନିଃଶ୍ୱାସ ଛାଡି ସିଂହ କହିଲା, "ବହୁଦିନ ହେଲା ମୁଁ କୌଣସି ବରାହ ଶାବକର ମାଂସ ଖାଇ ନାହିଁ । ମୋ ଗୁମ୍ଫା ଆଡକୁ ବି କୌଣସି ବରାହ ଆଜିକାଲି ଆସୁ ନାହାନ୍ତି ।"

"ଓ, ଏଇ କଥା ! ତେବେ ମୁଁ କାହିଁକି ଆଉ ଅଛି ? ଅପେକ୍ଷା କରନ୍ତୁ, ଆପଣଙ୍କ ସମ୍ମୁଖରେ ଗୋଟାଏ ବାର୍ହା ନିଶ୍ଚୟ ଆଣି ପହଞ୍ଚାଇବି ।"—ଶିଆଳ ପ୍ରତିଜ୍ଞା କଲା ।

ବଣରେ ବୁଲି ବୁଲି ଅବଶେଷରେ ଶିଆଳ ଗଛ ଛାଇରେ ବିଶ୍ରାମ କରୁଥିବା ଗୋଟିଏ ବାର୍‌ହାର ଭେଟ ପାଇଲା ।

ତା' ନିକଟକୁ ଯାଇ ସେ କହିଲା, "ମୁଁ ତୋତେ ଖୋଜି ଖୋଜି ସବୁ ଆଡ ବୁଲି ସାରିଲିଣି ।"

କାହିଁକି ?" ବାର୍‌ହା ପଚାରିଲା, "ଘଟଣା କ'ଣ ?"

ପାହାଡର ଗୁମ୍ଫାଆଡକୁ ସଙ୍କେତ କରି ଶିଆଳ କହିଲା, "ଆମ ରଜା ବୁଢା ହୋଇଯିବା ବିଷୟ ତୁ ଜାଣୁ । ଏବେ ସେ ତାଙ୍କ ଉତ୍ତରାଧିକାରୀ ନିଯୁକ୍ତ କରିବାକୁ ଚାହାନ୍ତି ଏବଂ ସେଥିପାଇଁ ସେ ତୋତେ ହିଁ ବାଛିଛନ୍ତି ।" ବାର୍‌ହା ବିଶ୍ୱାସ କରିପାରିଲା ନାହିଁ । ତା'ର ସନ୍ଦେହ ଦୂର କରିବାକୁ ଶିଆଳ କହିଲା, "ଆରେ, ଯଦି ବିଶ୍ୱାସ ନ ହେଉଛି ତେବେ ମୋ ସହିତ ସେଠାକୁ ଚାଲୁନୁ କିଆଁ ?"

ବାର୍‌ହା ଉଲ୍ଲସିତ ହୋଇ ଉଠିଲା । ଭାବିଲା, "ରଜା ହେବା କେଡେ ଭାଗ୍ୟର କଥା । ସବୁ ପଶୁମାନେ ମୁଣ୍ଡ ନଇଁ ସମ୍ମାନ କରିବେ ।"

ସେ ଠିଆ ହୋଇ ପଡିଲା, କହିଲା, "ହଉ ଚାଲ୍, ମୁଁ ତୋ' ସହିତ ଯିବି ।"

ଦୁହେଁ ଚାଲିଲେ ଗୁମ୍ଫା ଅଭିମୁଖେ । ଗୁମ୍ଫା କେଇ ହାତ ଦୂର ଅଛି ଶିଆଳ କହିଲା—"ଏବେ ତୁ ଯା, ହେଇ ତ ମହାରାଜ ବାହାରେ ବସିଛନ୍ତି । ମୁଣ୍ଡ ନୁଆଁଇ ମାନ୍ୟ କରି ରାଜପଦ ଗ୍ରହଣ କରିବୁ ଯା ।"

ବାର୍‌ହା ଆଗେଇ ଗଲା । ତାକୁ ଦେଖିବା ମାତ୍ରେ ସିଂହ କୁଦି ପଡିଲା । ଭୟରେ ହତଜ୍ଞାନ ହୋଇ ବାର୍‌ହା ସିଂହକୁ ପାଦରେ ଠେଲି ଦେଲା । ସେତିକିରେ ସିଂହଟା ପଡିଗଲା ଓ ବାର୍‌ହା ଜୀବନ ଘେନି ପଳାଇଗଲା ।



ବାର୍‌ହା ଖସି ପଳେଇବା ଦେଖି ଶିଆଳ ସିଂହକୁ କହିଲା, "ଆପଣ ତାକୁ ଧରିଲେ ନାହିଁ କାହିଁକି ?"

ଲଜ୍ଜିତ ହୋଇ ସିଂହ କହିଲା, "ଦୋଷଟା ମୋର । ଆଜିକାଲି ତରବରରେ କିଛି କରିପାରୁନି, ଗତି ମନ୍ଥର୍ ହୋଇଗଲାଣି । ଆଉ କ'ଣ ସତେ ବାର୍‌ହାଟିଏ ମୋତେ ମିଳିବ ।"

ସିଂହର ଦୁଃଖ ବୁଝି ଶିଆଳ କହିଲା, "ସଞ୍ଜ ଆଗରୁ ମୁଁ ପୁଣି ଥରେ ସେଇ ବାର୍‌ହାକୁ ଆଣି ଏଠି ହାଜର କରାଇବି ।"

ବାର୍‌ହା ଯେଉଁ ବାଟେ ଯାଇଥିଲା ସେଇ ବାଟେ ବାଟେ ଶିଆଳ ଚାଲିଲା । ଦେଖିଲା, ବାର୍‌ହା ନଈ କୂଳରେ ଥକା ମେଣ୍ଢାଉଛି, ଗୋଟା ପଣେ ଥରୁଛି, ଘନ ଘନ ନିଃଶ୍ୱାସ ଛାଡୁଚି, ଯେମିତିକି ଆଉ ଟିକକରେ ତା'ର ପ୍ରାଣ ବାହାରିଯିବ ।

ତାକୁ ଦେଖି ଶିଆଳ କହିଲା, "ହଇରେ, ତୁ ଏପରି ଥରୁଚୁ କିଆଁ ? ଏତେ ଛାନିଆ ହୋଇ ଦୌଡ଼ି ପଳାଇ ଆସିଲୁ ଯେ । ତୋ' ମୁଣ୍ଡରେ ବଜ୍ର ପଡ଼ିଲା ନା କ'ଣ ?"

ତୁ ତ ଜାଗା ଉପରେ ନ ଥିଲୁ, କ'ଣ ହେଲା କେମିତି ବୁଝିବୁ ?" ବାର୍‌ହା କହିଲା ।



"କ'ଣ ହେଲା କହିଲୁ" ଶିଆଳ କହିଲା, "ରହିଥିଲେ ତ ତୁ ରଜା ହୋଇଥାନ୍ତୁ । ମହାରାଜ ତୋତେ କେବଳ ସମ୍ମାନ ଦେଖାଉଥିଲେ । ବୁଝିଲୁ, ସେ ଖାଇବାକୁ ଇଚ୍ଛା କରିଥିଲେ ତୁ କି ଏଠି ଥାନ୍ତୁ ।"

ବାର୍‌ହା ମୁଣ୍ଡ ଟୁଙ୍ଗାରି କହିଲା, "ତୁ ଯାହା କହୁଚୁ ବୋଧେ ଠିକ୍ । ସେ ଯଦି ଖାଇବାକୁ ଚାହିଁଥା'ନ୍ତେ ସହଜରେ ଛାଡ଼ି ଦେଇ ନ ଥାନ୍ତେ ।"

ଶିଆଳ କହିଲା, "ମୋ ସାଙ୍ଗରେ ଆ । ତୋତେ ଆଉଥରେ ସୁଯୋଗ ଦେବାପାଇଁ ମୁଁ ମହାରାଜାଙ୍କୁ ଅନୁରୋଧ କରିଛି ।"

ଦୁହେଁ ଫେରିଲେ । ଗୁମ୍ଫା ନିକଟରେ ଶିଆଳ ବାର୍‌ହାକୁ କହିଲା, "ଭୟ ନ କରି ଯା ମାନ୍ୟ କରି ରାଜପଦ ପ୍ରଦାନ କରିବାକୁ କହ ।"

ବାର୍‌ହା ଧୀରେ ଧୀରେ ଗଲା ଓ ମୁଣ୍ଡ ନୁଆଁଇ ପ୍ରଣାମ କଲା । ସେ ତଳକୁ ଚାହିଁଥିବା ବେଳେ ସିଂହ ଝାମ୍ପି ପଡ଼ିଲା ଓ ବାର୍‌ହାର ତଣ୍ଟିକୁ ଜୋର୍‌ରେ ମୋଡ଼ି ଦେଲା । ତା'ପରେ ସେ ବାରହାର ଖପୁରି ହାଡ ଭାଙ୍ଗି ଦେଲା । ଅତି ଖୁସିରେ ସିଂହ ବାର୍‌ହାର ମସ୍ତିଷ୍କ ଖାଇବ ବୋଲି ବାହାରିଚି କି ନାହିଁ ସେଇ ସମୟରେ ଗୋଟିଏ ପାଦ ଟେକି ଶିଆଳ କହିଲା, "ନା ମହାରାଜ ' ସେପରି କରନ୍ତୁ ନାହିଁ ।"

"କାହିଁକି ନୁହେଁ ?" ସିଂହ ବିସ୍ମିତ ହୋଇ ପଚାରିଲା ।

"ଆଜ୍ଞା, ରାଜାମାନେ କ'ଣ ଏପରି ଖାଆନ୍ତି । ଆପଣଙ୍କ ଦେହରେ ରକ୍ତ ଛିଟା ପଡ଼ିଛି । ପ୍ରଥମେ ନଈରେ ଗାଧୋଇ କରି ଆସନ୍ତୁ ।"





ଶିଆଳ କଥା ମାନି ସିଂହ ଗାଧୋଇବାକୁ ଗଲା ।

ସେ ଯିବା ପରେ ପରେ ସୁଯୋଗ ଦେଖି ଶିଆଳ ଆରାମରେ ବାରହାର ମସ୍ତିଷ୍କଟିକୁ ଖାଇ ଦେଲା । ତା'ପରେ ଢଗୁଆଳ ପରି ବସି ରହିଲା ଚୁପ୍ ଚାପ୍ ।

ସିଂହ ପରିଷ୍କାର ପରିଚ୍ଛନ୍ନ ହୋଇ ଆସିଲା । ଏକ ମନଲାଖି ଭୋଜନ କଥା ଭାବି ସେ ବଡ ଉତ୍ଫୁଲ୍ଲ ଦିଶୁଥାଏ । ବାରହାର ଖପୁରିକୁ ଏପଟ ସେପଟ କରି ସେ ଖୋଜିଲା କେଉଁଠି ଅଛି ମସ୍ତିଷ୍କ ।

ଆଶ୍ଚର୍ଯ୍ୟ ହୋଇ ପଚାରିଲା —"ଆରେ, ମସ୍ତିଷ୍କ କାହିଁ ?" ସିଂହଠାରୁ ଅଧିକ ଆଶ୍ଚର୍ଯ୍ୟ ଭାବ ଦେଖାଇ ଶିଆଳ କହିଲା, "କାହାର ମସ୍ତିଷ୍କ ?"

"ବାରହାର, ଆଉ କାହାର ?" ସିଂହ କହିଲା ।

ଏଥର ଶିଆଳ ହସିଲା । କହିଲା, "ଆପଣଙ୍କର ଜାଣିବା ଉଚିତ ଯେ ଯଦି ତା'ର ମସ୍ତିଷ୍କ ବୋଲି କିଛି ଥା'ନ୍ତା, ତେବେ ସେ ଥରେ ମରଣ ମୁହଁରୁ ରକ୍ଷା ପାଇ ଆଉ ଥରେ ଧରା ଦେଇ ନ ଥାନ୍ତା ।" ଅତି ବିଜ୍ଞ ପରି ମୁଣ୍ଡ ହଲାଇ ଶିଆଳ କହିଲା, "ସେହି ବାରହାଟାର ଖପୁରି ଭିତରେ ମସ୍ତିଷ୍କ ନିଶ୍ଚୟ ନ ଥିଲା ।"

(ସିଂହଳ ଦେଶର ଲୋକକଥାରେ ଶିଆଳ ଏକ ଚତୁର ଜୀବ ରୂପେ ବର୍ଣ୍ଣିତ)

# ଭୋକିଲ ସାଥୀ

ବସନ୍ତର ଏକ ସକାଳ । ତିବ୍ବତର ଉପତ୍ୟକାରୁ ହାଡ-ଥରା ଶୀତ ବିଦାୟ ନେଇଥାଏ । ବହୁଥାଏ ମଳୟ । ଟିକିଏ ଆନନ୍ଦରେ ନିଃଶ୍ୱାସ ନେବାକୁ ନିବୁଜ ବସା ଛାଡ଼ି ପଶୁମାନେ ପଦାକୁ ବାହାରି ଆସିଥାନ୍ତି । ଖୁସିରେ ପକ୍ଷୀମାନେ ଗୀତ ଗାଉଥାନ୍ତି । ଆଶ୍ଚର୍ଯ୍ୟ ହବାର କିଛି ନାହିଁ, ଭୋକିଲା ଗଧିଆଟିଏ ବି ଖାଦ୍ୟର ସନ୍ଧାନରେ ବାହାରି ପଡିଥାଏ ।

ଗଧିଆର ଦୃଷ୍ଟି ପଡିଲା ଗୋଟିଏ କ୍ୟାଙ୍ଗ୍ ଶିଶୁ ଉପରେ । ତିବ୍ବତର ଏକ ପ୍ରକାରର ବଣୁଆ ଗଧର ନାମ କ୍ୟାଙ୍ଗ୍ । ଗଧିଆ ଦେଖିଲା କ୍ୟାଙ୍ଗ୍‌ର ବୟସ ଏକ ବର୍ଷରୁ ଅଧିକା ହେବ ନି । ସେ କଅଁଳିଆ ଘାସ ଖାଇବାରେ ବ୍ୟସ୍ତ ଥାଏ ।

ତାକୁ ଦେଖି ଗଧିଆ ବିଚାର କଲା, "ଯା' ହଉ, ବଢ଼ିଆ ଖାଦ୍ୟ ମିଳି ଯାଇଛି ।" ଛପି ଛପି ଶିକାର ଉପରକୁ ଝାମ୍ପ ମାରିବାକୁ ଉଦ୍ୟମ କଲାବେଳେ କ୍ୟାଙ୍ଗ୍ ତାକୁ ଦେଖି ଚକାଇ କହିଲା, "ଗଧିଆ ମାମୁଁ ! ମୋତେ ବର୍ତ୍ତମାନ ଖାଅନି । ପ୍ରଚଣ୍ଡ ଶୀତ ଯୋଗୁଁ ମୁଁ ବହୁତ ଝଡି ଯାଇଛି । ଶରତ ଋତୁ ବେଳକୁ ମୋର ଶରୀର ପୁଣି ଦୁଇଗୁଣ ମୋଟା



ହୋଇ ଯାଇଥିବ । ସେତେବେଳେ ମୋତେ ଭୋଜନ କଲେ ତୁମେ ପରମ ସନ୍ତୋଷ ଲାଭ କରିବ ।

ସେଥିରେ ଗଧିଆ ରାଜି ହୋଇଗଲା । ---"ବେଶ୍, ଛ'ମାସ ପୂରିଲେ ମୋତେ ଠିକ୍ ଏଇ ଜାଗାରେ ଦେଖା କରିବୁ ।"

ଶରତ ସମୟ ହେବାରୁ ଗଧିଆ ଚାଲିଲା କ୍ୟାଙ୍ଗ୍‌କୁ ଭେଟିବା ପାଇଁ । ପାହାଡ ବାଟ ଦେଇ ଯିବା ବେଳେ ଗୋଟିଏ କୋକିଶିଆଳି ସହିତ ତା'ର ଦେଖା ହେଲା । କୋକିଶିଆଳି ପଚାରିଲା, "ବଡ ତରବରରେ ଥିବା ପରି ଜଣା ପଡୁଚ ? କୁଆଡେ ଚାଲିଚ କି ?"

"ଆଜି ମୋର ଗୋଟିଏ ହୃଷ୍ଟପୁଷ୍ଟ କ୍ୟାଙ୍ଗ୍ ସହିତ ସାକ୍ଷାତ ହେବାର ଅଛି ।" ଗଧିଆ ଛ'ମାସ ତଳେ ଯାହା ଯାହା ଘଟିଥିଲା ମୂଳରୁ ସବୁ କହିଗଲା । କୋକିଶିଆଳି ଏହି ସୁଖାଦ୍ୟର ଲୋଭ ଛାଡି ପାରିଲା ନାହିଁ । ସେ କହିଲା, "ଯଦି ସେହି କ୍ୟାଙ୍ଗ୍‌ଟି ବେଶ୍ ବଡ ବୋଲି ତୁମେ କହୁଚ, ତା'ହେଲେ ଜଣକ ପାଇଁ ତାହା ଯଥେଷ୍ଟ ହୋଇ ଯିବନି କି ?" ମୋତେ ତୁମ ଭୋଜିର ସାଥୀ କଲେ କ୍ଷତି କ'ଣ ହୁଅନ୍ତା ?"



"ଆସ---"—ଗଧିଆ କହିଲା । ଦୁହେଁ ଚାଲିଲେ ।

ବାଟରେ ସେମାନଙ୍କର ଦେଖା ହେଲା ଠେକୁଆ ସହିତ । ଠେକୁଆ ପଚାରିଲା, "ତୁମେ ଦୁହେଁ କୁଆଡେ ଚାଲିଲ ?"

ଗଧିଆ ସବୁକଥା ବର୍ଣ୍ଣନା କଲା ।

ବଣୁଆ ଗଧ କ୍ୟାଙ୍ଗ୍‌ଟିର ପାଇଁ ଭାବି ମନ ଦୁଃଖ କଲା ଠେକୁଆ ।

ବଞ୍ଚି ରହିବା କେତେ ଭଲ । ପାହାଡ ଓ ସବୁଜ ବନଭୂମିରେ ବିଚରଣ କରିବା କେତେ ସୁଖକର ନୁହେଁ ସତେ । ଏହି ଦୁଇ ସ୍ୱାର୍ଥପର ପ୍ରାଣୀଙ୍କ ପାଇଁ କାହିଁକି ସେଇ ନିରୀହଟି ମରିବ ? କୌଣସି ମତେ କ୍ୟାଙ୍ଗ୍‌କୁ ବଞ୍ଚାଇବା ପାଇଁ ଠିକ୍ କଲା ଠେକୁଆ । କିନ୍ତୁ ତା' କାମ ଓ କଥା ଯୋଗୁଁ ଆଉ ଦି ଜଣଙ୍କ ମନରେ ଟିକିଏ ବି ଯେମିତି ସନ୍ଦେହ ନ ଉପୁଜେ ସେଥିପାଇଁ ସେ ସାବଧାନ ରହିଲା ।

ଠେକୁଆ କହିଲା, "କ୍ୟାଙ୍ଗ୍ ବହୁତ ବଡ । ସବୁଗୁଡିକ ଖାଇଲେ ତୁମ ଦୁହିଁଙ୍କର ପେଟ ଖରାପ ହେବ । ମୋତେ ସାଙ୍ଗରେ ନିଅ ।"



"ହଁ, ଚାଲ । ଯେତେ ଜଣ ଅଧିକା ହେବା ଖେଳି ସେତେ ଜମିବ ।"

ତିନିହେଁ ଏକାଠି ଚାଲିଲେ । ପହଞ୍ଚିଲେ ନିର୍ଦ୍ଧାରିତ ସ୍ଥାନରେ । ଦେଖିଲେ, ଗୋଟିଏ ଗଛ ମୂଳେ କ୍ୟାଙ୍ଗ୍ ଅପେକ୍ଷା କରିଛି । ତା' ଚକ୍ଷୁରେ ଦୁଃଖ ଓ ଭୟର ଚିହ୍ନ । କିନ୍ତୁ ସତକୁ ସତ ସେଇଟି ବେଶ୍ ବଡ ଓ ଚର୍ବିଳ ହୋଇ ଯାଇଥିଲା । ତାକୁ ଦେଖିଲା କ୍ଷଣି ଓଠରେ ଜିଭ ବୁଲେଇ ଆଣିଲା ଗଧିଆ । ମାଂସ ଲୋଭରେ ଆଖି ତା'ର ଉଜ୍ଜ୍ୱଳ ହୋଇ ଉଠିଲା ।

ସେ ତା' ସାଥୀମାନଙ୍କୁ କହିଲା, "ଚାହଁ, ସେ ଏବେ ଆମର ଭୋଜନ ପାଇଁ ଉପଯୁକ୍ତ ହୋଇ ପାରିଚି ।"

ଗଧିଆ କ୍ୟାଙ୍ଗ୍‌ର ବେକ-ଷଣ୍ଢାକୁ କାମୁଡି ଧରିବା ମାତ୍ରେ ଠେକୁଆ ବାରଣ କରି କହିଲା, "ହାଁ, ହାଁ, ସେମିତି କରନା । ଏଭଳି ମାରିବା ଏକ ବାଜେ ଓ ବର୍ବର ଉପାୟ । ଏହି କ୍ୟାଙ୍ଗ୍ ସଦୃଶ ଏକ ସୁନ୍ଦର ଜୀବକୁ ଏପରି ହତ୍ୟା କରିବା ଯାହା ଏକ ସୁନ୍ଦର ଭୋଜନ ନଷ୍ଟ କରିବା ତାହା । ବରଂ, ଚାଲ ଆମେ ତାକୁ ଗଳା ଚିପି ହତ୍ୟା କରିବା, ଯାହା ଫଳରେ ତା'ର ପୁରା ଦେହଟା ଅକ୍ଷତ ରହିବ । ତୁମେ ଦୁହେଁ କ'ଣ ଭାବୁଚ କହିଲ ?"



ଅନ୍ୟ ଦୁହେଁ ପ୍ରସ୍ତାବଟିକୁ ଆନନ୍ଦରେ ଗ୍ରହଣ କଲେ ।

"ସବୁ କାମ ମୋ ଉପରେ ଛାଡ଼ି ଦିଅ । ପାହାଡ଼ ଉପରେ ଜଣେ ମେଷ-ପାଳକର କୁଟୀର ଅଛି । ମୁଁ ଯାଉଛି ତା' ପାଖରୁ ଦଉଡ଼ିଟିଏ ମାଗି ଆଣିବି ।"

ଠେକୁଆ ଗଲା ଓ ଡେରି ନ କରି ଦଉଡ଼ିଟିଏ ଧରି ଫେରି ଆସିଲା । ଦଉଡ଼ିର ଗୋଟିଏ ମୁଣ୍ଡରେ ଗୋଟିଏ ବଡ଼ ଫାଶ ଓ ଅନ୍ୟ ମୁଣ୍ଡରେ ଦୁଇଟି ସାନ ସାନ ଫାଶ ତିଆରି କଲା ।

ସେ କହିଲା, "ଏବେ ଶୁଣ, କ୍ୟାଙ୍ଗ୍ ବେଶ୍ ଶକ୍ତିଶାଳୀ ଜୀବଟିଏ, ଆମେ ତିନିହେଁ ନ ଲାଗିଲେ ତା' ଗଲା ଚିପି ହେବ ନି । ଏଇ ବଡ଼ ଫାଶଟି ତା' ଗଳାରେ ଦେଇ ଦେବା । ତୁମେ ଦୁହେଁ ଅନ୍ୟ ଦୁଇଟି ଫାଶ ଗଳାରେ ପିନ୍ଧି ଠିଆ ହେବ । ମୁଁ ରହିବି ମଝାମଝି ଜାଗାରେ ଓ ଶକ୍ତ କରି ଦଉଡ଼ିକୁ ଦାନ୍ତରେ କାମୁଡ଼ି ଧରିବି । ମୋଠୁ ସଙ୍କେତ ପାଇବା ମାତ୍ରେ ତୁମେ ଦୁହେଁ ଜୋର୍‌ରେ ଟାଣିବ ।"



ଏତିକି କହି ସେ ବଡ ଫାଶଟିକୁ କ୍ୟାଙ୍ଗ୍‌ର ବେକରେ ଗଳାଇ ଦେଲା ଏବଂ ସାନ ଫାଶରୁ ଗୋଟିଏ ଗଧିଆର ବେକରେ ଓ ଅନ୍ୟଟି କୋକିଶିଆଳିର ବେକରେ ଲଗାଇ ଦେଲା । ନିଜେ ଫାଶ ନ ଥିବା ଖାଲି ଅଂଶଟି ଦାନ୍ତରେ ଧରିଲା ।

ଠେକୁଆ କହିଲା—"ଟାଣ୍‌---।"

ସେମାନେ ଟାଣିଲେ । କ୍ୟାଙ୍ଗ୍ କେଇପାଦ ଆଗକୁ ଆସିଯିବାରୁ ଗଧିଆ ଓ କୋକିଶିଆଳି ତଳେ ଘୋସାରି ହୋଇଗଲେ । ଫାଶ ଚିପି ହୋଇ ସେମାନଙ୍କ ଗଳା ରୁନ୍ଧ ହୋଇଗଲା ।

"ଆଉରି ଜୋର୍‌ରେ ଟାଣ"—କହି ଠେକୁଆ ଦଉଡ଼ି ଛାଡ଼ି ଦେଲା ।

ଗଧିଆ ଓ କୋକିଶିଆଳି ତଳମୁହାଁ ହୋଇ ପଡ଼ିଗଲେ । ଗଳା ଚିପି ହୋଇ ସେମାନେ ମରି ଯାଇଥିଲେ ।

କ୍ୟାଙ୍ଗ୍‌ର ବେକରୁ ଠେକୁଆ ଫାଶ ଫିଟାଇ ଦେଲା ଓ ଡେଇଁ ଡେଇଁ ଫେରିଗଲା ଘରକୁ । ମନ ତା'ର ଖୁସି, କାରଣ ଦିନକର ଭଲ କାମ ସେ କରି ପାରିଥିଲା ।

(ତିବ୍ବତର ଉପରାଞ୍ଚଳରେ ଠେକୁଆ ଦୁର୍ବଳର ସହାୟକ ରୂପେ ବର୍ଣ୍ଣିତ)





# ପେଲାଦ୍ରକ୍‌ର ବିଚାର

ଥରେ ଦୁଇଜଣ ମଣିଷଙ୍କ ଭିତରେ ଗୋଟିଏ କୁରାଢ଼ି ନେଇ ବିବାଦ ଉପୁଜିଲା । ଜଣେ କହିଲା, "ଗତବର୍ଷ ମୋଠାରୁ ଯେଉଁ କୁରାଢ଼ିଟି ମାଗି ନେଇଥିଲୁ ସେଇଟା କାହିଁ ?"

ଅନ୍ୟ ଜଣକ ଉତ୍ତର ଦେଲା, "ମୁଁ ପରା ତୋତେ କହିଲି ଯେ ସେଇଟାକୁ ପୋକ ଖାଇଗଲେ ବୋଲି ।"

"ତା' ଅସମ୍ଭବ । ତୁ ମିଛ କହୁଚୁ ।"

"ନାଁ, ଏହା ସତ ।"

ଚାଲିଲା ଯୁକ୍ତି-ତର୍କ । ମୀମାଂସା ହୋଇ ପାରିଲା ନାହିଁ । ଶେଷରେ ନିଷ୍ପତ୍ତି ପାଇଁ ସେମାନେ ଯାଇ ପହଞ୍ଚିଲେ ରାଜା ସୋଲୋମନ୍‌ଙ୍କ ନିକଟରେ ।

ରାଜା ଧୈର୍ଯ୍ୟର ସହିତ ଉଭୟ ପକ୍ଷର କଥା ଶୁଣିଲେ ଓ କେହି ସାକ୍ଷୀ ଥିଲେ ହାଜର କରିବାକୁ ନିର୍ଦ୍ଦେଶ ଦେଲେ । ଉଭୟେ ମନା କଲେ । ଏଣୁ ପରାମର୍ଶ ପାଇଁ ରାଜା ଡକାଇ ପଠାଇଲେ ବାଳିକା ହରିଣ, ପେଲାଦ୍‌କ୍‌କୁ ।

ରାଜାଙ୍କ ଆଗରେ ପେଲାଦ୍‌କ୍‌ ତତ୍‌କ୍ଷଣାତ୍‌ ଉପସ୍ଥିତ ହେଲା । ରାଜା କଳିର ସମସ୍ତ ବିବରଣୀ ଦେଇ ପରାମର୍ଶ ଦେବା ପାଇଁ ଆଦେଶ ଦେଲେ ।

ପେଲାଦ୍‌କ୍ କହିଲା, "ମହାରାଜ ! କ୍ଷମା କରନ୍ତୁ । ଜାମୁଙ୍ଗ ଡକରା ପାଇ ମୁଁ ବଡ ତରବରରେ ଆସିଛି । ପ୍ରଥମେ ମୋତେ ସ୍ନାନ ପାଇଁ ଅନୁମତି ଦିଅନ୍ତୁ ।

ରାଜା ସମ୍ମତି ଜଣାଇ କହିଲେ, "ଯାଅ, କିନ୍ତୁ ଶୀଘ୍ର---।"

ପାଖ ନଈକୁ ଗାଧୋଇଗଲା ବେଳେ ପେଲାଦ୍‌କ୍‌ର ନଜର ପଡିଲା ଗୋଟିଏ ଖୋଲା ଜାଗା ଉପରେ । ସେଠାରେ ଘାସ ସବୁ ଅଳ୍ପସମୟ ପୂର୍ବରୁ ପୋଡା ହୋଇଥାଏ, ରହିଥାଏ ପାଉଁଶ । ପେଲାଦ୍‌କ୍ ସେହି ପାଉଁଶ ଉପରେ ଗଡିଗଲା । ତା'ପରେ ଫେରିଲା ରାଜ ଦରବାରକୁ ।

ତାକୁ ଦେଖିଲା କ୍ଷଣି ରାଜା କହିଲେ, "ଆରେ ଇଏ କ'ଣ ? ଗାଧୋଇଲେ ସମସ୍ତେ ପରିଷ୍କାର ଦିଶନ୍ତି, କିନ୍ତୁ ତୁମେ ଏପରି ଅପରିଚ୍ଛନ୍ନ ଦିଶୁଛ କାହିଁକି ?"

ପେଲାଦ୍‌କ୍ କହିଲା, "ମହାରାଜ । ମୁଁ ଯାଇ ଦେଖେତ ନଈରେ ନିଆଁ ଲାଗି ଯାଇଛି । କାଳେ ନିଆଁ ନଈରୁ ଚରି ଆସି ଆପଣଙ୍କ ମହଲ ଯାଏଁ ବ୍ୟାପିଯିବ ସେଥିପାଇଁ ମୁଁ ତା' ଭିତରକୁ ଡେଇଁ ପଡିଲି । ସେଇ କାରଣରୁ ମୋ ଦେହସାରା ପାଉଁଶ ଲଗି ଯାଇଛି ।"



ରାଜା ଓ ମନ୍ତ୍ରୀବୃନ୍ଦ ବାଲି-ହରିଣଟି ଆଡକୁ ଅବିଶ୍ୱାସର ସହିତ ଚାହିଁଲେ । ଜନ୍ମ ହେଲା ଦିନରୁ ଏପରି ଅଜବ କଥା ସେମାନେ ଶୁଣି ନ ଥିଲେ ।

ରାଜା କହିଲେ, "ତୁମର ଏ ମିଛ-କଥାଟି ମୁଁ ବିଶ୍ୱାସ କରିବି ବୋଲି ଭାବୁଚ ନା କ'ଣ ?"

"ଆଜ୍ଞା, ଏହା ସତ୍ୟ"—ପେଲାନ୍ଦୁକ୍ ଉତ୍ତର ଦେଲା ।

ରାଜା ଭାରି ରାଗିଗଲେ । ତାର ଜୀବତେ, ରାଜା ସୋଲୋମନ୍‌ଙ୍କୁ ପରିହାସ କରିବାକୁ ସାହସ କଲା କେମିତି ?

ରାଜା ବଜ୍ର-ଗମ୍ଭୀର କଣ୍ଠରେ କହିଲେ, "ଆରେ ହରିଣ ! ମୁଁ ସାବଧାନ କରିଦେଉଚି, ଏଇଟା ପରିହାସର କ୍ଷେତ୍ର ନୁହେଁ । ଏଠି ଯେଉଁମାନେ ଅଛନ୍ତି ତାଙ୍କୁ ଥରେ ପଚାର ତ ଏପରି ଘଟଣା ଘଟି ପାରେ କି ? ଏହା ତ ସମ୍ପୂର୍ଣ୍ଣ ଅସମ୍ଭବ ।"

ବାଲି-ହରିଣ ନତ-ଜାନୁ ହୋଇ କହିଲା, "ମହାରାଜ ! ଉପସ୍ଥିତ ସଭ୍ୟବୃନ୍ଦ ଓ ଆପଣ ନିଜେ ଯଦି ମୋ'କଥା ବିଶ୍ୱାସ କରିପାରୁ ନାହାନ୍ତି ତେବେ କୁରାଢ଼ି ମାଗି ନେଇ ଯିଏ ଫେରାଇ ନାହିଁ ତା' କଥା ବିଶ୍ୱାସ କରୁଛନ୍ତି କେମିତି ? ତାମୁଙ୍କ ମତରେ ନଈରେ ନିଆଁ ଲାଗିବା ଅସମ୍ଭବ, ତେବେ ମୁଁ ପଚାରୁଚି କୁରାଢ଼ିକୁ ପୋକ ଖାଇଯିବା ସମ୍ଭବ କି ?"

ରାଜା ନୀରବ । ସେ ପେଲାନ୍ଦୁକ୍ କଥାର ମର୍ମ ବୁଝିପାରିଲେ । ସମସ୍ୟାଟି ତାଙ୍କ ଆଗରେ ଦିବାଲୋକ ପରି ସ୍ପଷ୍ଟ ହୋଇଗଲା । ସେ କୁରାଢ଼ି ଧାର ନେଇଥିବା ଲୋକକୁ ଫେରାଇ ଦେବାକୁ ଆଦେଶ ଦେଲେ । କୃତଜ୍ଞତାର ନିଦର୍ଶନ ସ୍ୱରୂପ ସେ କ୍ଷୁଦ୍ର ବାଲି-ହରିଣଟିକୁ ଦେଲେ ଅନେକ ରାଜୋଚିତ ଉପହାର । ବନ-ଭୂମିର ବିଚାରକ ରୂପେ ସେ ପାଇଲା ନିଯୁକ୍ତି । ସେଇଦିନଠାରୁ ରାଜା ସୋଲୋମନ୍‌ଙ୍କ ଦରବାରକୁ ଆସୁଥିବା ସମସ୍ତ ବିବାଦଗୁଡ଼ିକର ନିରଙ୍କୁଶ ବିଚାରକ ଭାବେ ପେଲାନ୍ଦୁକ୍ ସମ୍ମାନ ପାଇ ଆସୁଛି ।

(ମାଲୟେସିଆର ଜଙ୍ଗଲରେ ବାଲି-ହରିଣ ବା ଖୁରାଣ୍ଡ ପେଲାନ୍ଦୁକ୍ ବିଜ୍ଞତା ଓ ବିଚକ୍ଷଣତା ପାଇଁ ସମ୍ମାନିତ )



# ଚୂନ ଗାତ ପବିତ୍ର

ଦିନେ କ୍ଷୁଦ୍ର ବାଲିହରିଣ କଂଚିଲ୍ ଜଣେ କୃଷକର କୁଡିଆ ଆଗ ଦେଇ ଯାଉଥିଲା । ଦେଖିଲା, କୃଷକ ଓ ତା'ର ସ୍ତ୍ରୀ ଘରେ ନାହାନ୍ତି, ଯାଇଛନ୍ତି କ୍ଷେତକୁ, କିନ୍ତୁ ଦାଣ କବାଟ ମେଲା ଅଛି । ସେ ଘର ଭିତରକୁ ନ ଚାହିଁ ରହିପାରିଲା ନାହିଁ । ଦେଖେ ତ କଦଳି ପତ୍ରରେ ଗୁଡା ହୋଇ ଥୁଆ ହୋଇଛି କଦଳି ପିଠାଟିଏ । ଟିକେ ଚାଖିବାକୁ ମନ ହେବାରୁ ସେ ପାଦ ଚିପି ଚିପି ଭିତରକୁ ଗଲା ଓ ପିଠାରୁ କଲେ ଖାଇଲା । ବଢ଼ିଆ ଲାଗିଲାରୁ ପୁଣି କଲେ ଖାଇଲା । ଲୋଭ ସମ୍ଭାଳି ନ ପାରି ଆଉରି କଲେ ଖାଇଲା । ଶେଷରେ ଗୋଟାକ ଯାକ ପିଠା ଧରି ପଳେଇ ପଳେଇ ବାହାରି ଗଲା ପଦାକୁ । ଯାଉଁ ଯାଉଁ ପଡିଗଲା ଏକ ବିରାଟ ଖାତ ଭିତରେ । ସେଇଟା କୃଷକର ଚୂନ ଖାତ । ଭାରି ଗହୀର, ବହୁତ ଚଉଡା । ଯେତେ ଚେଷ୍ଟା କଲେ ବି ଯେତେ ଡିଆଁଡେଇଁ କଲେ ବି କଂଚିଲ୍ ଉପରକୁ ବାହାରି ପାରିଲା ନାହିଁ । ଅଗତ୍ୟା କ୍ଳାନ୍ତ ହୋଇ ବସି ପଡିଲା ଓ ଭାବିଲା କ'ଣ କରିବ ?

ଏହି ସମୟରେ ଶୁଣାଗଲା ବାଘର ପାଦ ଶବ୍ଦ । ଡରବରରେ କଂଚିଲ୍ ଚୂଡ଼ା କଦଳି ପତ୍ରଟାକୁ ମେଲାଇ ଧରି ବହି ଭଳି ପଢ଼ି ବସିଲା—"ହେ ଭଗବାନ୍, ହେ ଭଗବାନ୍---।"

ଖାତ ଭିତରକୁ ଚାହିଁ ବାଘ କହିଲା, "ଆରେ ଈଶ୍ୱରଙ୍କ ନାମ ନେଉଛୁ କାହିଁକି ?"

କଂଚିଲ୍ ନ ଶୁଣିପାରିବାର ଛଳନା କଲା । ଏକ ଧ୍ୟାନରେ ଆଖି ଆଗରେ କଦଳି ପତ୍ରକୁ ଧରି ଚାହିଁରହିଲା ଯେମିତିକି ସେ ପଢୁଛି ।

"ଆଜି ଧ୍ୱଂସର ଦିନ । ଯେଉଁମାନେ ପବିତ୍ର ଖାତରେ ଆଶ୍ରୟ ନେବେ ସେଇମାନେ କେବଳ ବଂଚି ରହିବେ । ହେ ଭଗବାନ୍, ହେ ଭଗବାନ୍---।"

"କିଏ କହିଲା ଆଜି ଧ୍ୱଂସର ଦିନ ?" କଂଚିଲ୍ ଉପରକୁ ଚାହିଁ ଉତ୍ତର ଦେଲା, "କିରେ, ମୁଁ ପବିତ୍ର ଧର୍ମଗ୍ରନ୍ଥ ପଢୁଛି ବୋଲି ଦେଖି ପାରୁନୁ କି ?" ଟିକିଏ ବିରକ୍ତ ଭାବ ଦେଖାଇ ସେ ପୁଣି କହିଲା,

"କାହିଁକି ମୋ ପଢ଼ାରେ ବ୍ୟାଘାତ ସୃଷ୍ଟି କରୁଛୁ ?" ତା'ପରେ ସେ ପଢ଼ିବାକୁ ଲାଗିଲା---"ଯେଉଁଦିନ ସୂର୍ଯ୍ୟଙ୍କ ମୁହଁ ଅଧା ଦିଶିବ ଏବଂ ପବନ ପୂର୍ବ ଦମ୍‌ରେ ବହିବ ସେଇଦିନ ଧ୍ୱଂସ ହେବ ପୃଥିବୀ ଦେଖ, ଆଜି ସୂର୍ଯ୍ୟର ଅର୍ଦ୍ଧେକ ମାତ୍ର ଦୃଶ୍ୟ ହେଉଚି, ପୁଣି ଟିକେ ପବନର ଶବ୍ଦକୁ ଶୁଣ । ଠିକ୍, ଠିକ୍, ଆଜି ହିଁ ଶେଷତମ ଦିନ । ଯେଉଁମାନେ କେବଳ ପବିତ୍ର ଚୂନ ଖାତରେ ଆଶ୍ରୟ ନେବେ ସେଇମାନେ ହିଁ ବଞ୍ଚିବେ ।"

ଏହା ଶୁଣି ଭୟରେ ବାଘ ଥରିବାକୁ ଲାଗିଲା । କହିଲା,—"ମୁଁ ଖାତ ଭିତରକୁ ଯାଇପାରିବି କି ?"

"ନା,' ନା' ବାରଣ କଲା କଂଚିଲ୍ "ତୁ ବଡ ଅପରିଷ୍କାର ।"

"କିଏ କହିଲା ? ମୁଁ ତ ପରିଷ୍କାର ରହେ ।"

"ନା, ତୁ ସବୁବେଳେ ଛିଙ୍କୁ । ଛିଙ୍କିଲେ ଏହ ପବିତ୍ର ସ୍ଥାନର ଅବମାନନା ହେବ ।"

"ମୁଁ ଶପଥ କରୁଛି, ଛିଙ୍କିବି ନାହିଁ"—ଏତିକି କହି ବାଘ ଖାତ ଭିତରକୁ ଡେଇଁପଡିଲା । "ଦେଖ୍, ମୋ ସାଙ୍ଗରେ ଲାଗିବୁ ନାହିଁ"—କହି କଂଚିଲ୍ ପଢ଼ିବାର ଅଭିନୟ କଲା—"ହେ ଭଗବାନ୍, ହେ ଭଗବାନ୍--- ।"

ତା'ପରେ ଆସିଲା ଭାଲୁ ଓ ସେ ଖାତକୁ ଲକ୍ଷ୍ୟ କରି ପଚାରିଲା—"ସେଠି କିଏ ଈଶ୍ୱରଙ୍କୁ ଡାକୁଚି ?"

ବାଘ ଉତ୍ତର ଦେଲା, "କଂଚିଲ୍ ଧର୍ମଗ୍ରନ୍ଥ ପଢ଼ି ଜାଣିଚି ଯେ ଆଜି ଧ୍ୱଂସର ଦିନ । କେବଳ ଯେଉଁମାନେ ପବିତ୍ର ଚୂନ ଖାତରେ ଆଶ୍ରୟ ନେବେ ସେଇମାନେ ହିଁ ବଞ୍ଚିଯିବେ ।"

ଭାଲୁଟି ଡରିଗଲା, କହିଲା—"ମୁଁ ତୁମ ସହିତ ଭିତରେ ରହିବି ।"

"ନା-ନା, ତୁ ସର୍ବଦା ଛିଙ୍କୁ । ଧର୍ମଗ୍ରନ୍ଥରେ ସ୍ପଷ୍ଟ ଲେଖା ଅଛି ଯେ ଯିଏ ଛିଙ୍କିବ ତାକୁ ବାହାରକୁ ପକେଇ ଦିଆଯିବ ।"

"ମୁଁ ଶପଥ କରୁଛି ଛିଙ୍କିବି ନାହିଁ"—କହି ଭାଲୁ ଖାତ ଭିତରକୁ ଗଲା । କଦଳି ପତ୍ର ଉପରେ ଚକ୍ଷୁ ସ୍ଥିର ରଖି କଂଚିଲ୍ ପଢ଼ିବାରେ ଲାଗିଥାଏ, "ହେ ଈଶ୍ୱର ଆମକୁ ରକ୍ଷାକର, ହେ ଈଶ୍ୱର୍---।"

"କିଏ ସେଠି ଭଗବାନଙ୍କୁ ଡାକୁଚି ?" ଉପରକୁ ଲକ୍ଷ୍ୟ କରି ବାଘ ଓ ଭାଲୁ ଦୁହେଁ ଦେଖିଲେ ଯେ ହାତୀ ଚାହିଁଚି ତଳକୁ ।

"ତୁମେ ସେଠି ଲୁଚିଛ କାହିଁକି ?"

"କଂଚିଲ, ଧର୍ମଗ୍ରନ୍ଥ ପଢ଼ି ଜାଣିଚି ଯେ ଆଜି ଧ୍ୱଂସର ଦିବସ । କେବଳ ଯେଉଁମାନେ ଏହି ପବିତ୍ର ଖାତରେ ରହିବେ ବଞ୍ଚିଯିବେ ।"

ହାତୀ ଭୟରେ କମ୍ପିଲା, "ମୁଁ ମଧ୍ୟ ତଳକୁ ଯିବି ।"



“ନା-ନା-ନା” ତିନିଜଣ ଯାକ ଉଚ୍ଚ କଣ୍ଠରେ ବାରଣ କଲେ ।

“ତୁ ଅପରିଷ୍କାର, ତୁ ବହୁତ ଛିଙ୍କୁ ଏବଂ ଛିଙ୍କିଲେ ଜୋର୍‌ରେ ଶବ୍ଦ ହୁଏ । ପବିତ୍ର ଗ୍ରନ୍ଥରେ ଲେଖା ଅଛି, ଯିଏ ଛିଙ୍କିବା ଦ୍ୱାରା ପବିତ୍ର ସ୍ଥାନକୁ ଅପବିତ୍ର କରିବ ତାକୁ ବାହାରକୁ ଫୋପାଡି ଦିଆଯିବ ।”

ହାତୀ କହିଲା, “ମୋତେ ଦୟାକରି ଅନୁମତି ଦିଅ । ମୁଁ ଛିଙ୍କିବି ନାହିଁ । ଶୁଣ୍ଢକୁ ମାଟିରେ ଭର ଦେଇ ଠିଆ ହେବି, ଫଳରେ ଛିଙ୍କ ମାଡିବ ନାହିଁ ।”

ହାତୀକୁ ଅନୁମତି ମିଳିଲା । ଚାରିଜଣ ଯାକ ଏକାଠି ବସିଲେ ।

କଂଚିଲ୍ କଦଳି ପତ୍ର ଉପରେ ଦୃଷ୍ଟି ରଖି ପଢ଼ିବାରେ ମନ ଦେଲା, “ହେ ଈଶ୍ୱର, ହେ ଈଶ୍ୱର---।”

ହଠାତ୍ ତା’ର ସ୍ୱର ବନ୍ଦ ହୋଇଗଲା । ନିଜ ନାକ ଚିପି ଧରି ସେ କହିଲା—“ନା---ନ ହଉ, ନ ହଉ---ଆ ଛୁଁ---।

“ଆରେ ଏଇଟା ସ୍ଥାନ ଅପବିତ୍ର କରିଛି ।” ଅନ୍ୟ ତିନିଜଣ ଗର୍ଜି ଉଠିଲେ । ରାଗରେ ବେଶ୍ ଦୃଢ଼ ଭାବରେ ସେମାନେ କଂଚିଲ୍‌କୁ ଧରି ପକାଇଲେ ଏବଂ ଫୋପାଡି ଦେଲେ ଖାତର ବାହାରକୁ ।

(ଇଣ୍ଡୋନେସିଆର ବନବାସୀ କ୍ଷୁଦ୍ର ବାଳିହରିଣ ବା ଖୁରଣ୍ଡ କଂଚିଲ୍ ନାମରେ ପରିଚିତ ଓ ଚତୁରତା ପାଇଁ ବିଖ୍ୟାତ )

Printed at Aravali Printers & Publishers Pvt. Ltd., Okhla-II, New Delhi-20.

